# କାଇଁଚମାଳି

କାନନ ମିଶ୍ର




ବହିଘର
ସିନେମା ବଜାର, ବାଲେଶ୍ୱର

# କାଇଁଚ଼ମାଳି

(ଶିଶୁକବିତା ସଂକଳନ)

**କାନନ ମିଶ୍ର**

ପ୍ରଚ୍ଛଦ ଓ ଅଳଙ୍କରଣ :
ଅଶୋକ କୁମାର ମହାନ୍ତି

ପ୍ରକାଶକ :
**ବହିଘର,**
ସିନେମା ବଜାର, ବାଲେଶ୍ୱର - ୭୫୬୦୦୩
ଫୋନ୍ - ୨୬୪୬୮୮

ମୁଦ୍ରଣ :
**ପୃଥ୍ୱୀ ପ୍ରିଣ୍ଟର,**
ସିନେମା ବଜାର, ବାଲେଶ୍ୱର-୭୫୬୦୦୩

ପ୍ରଥମ ସଂସ୍କରଣ :
ଜୁନ, ୨୦୦୩

ମୂଲ୍ୟ :
୨୦ଟଙ୍କା ମାତ୍ର

**KAINCHAMALI**
(Poems for Children)

**Kanan Mishra**

Designed by
**Ashok Ku. Mohanty**

Published by :
**BAHIGHARA.**
Cinema Bazar, Baleshwar - 756003
Tele - 264688

Printed at :
**PRITHVI PRINTER,**
Cinema Bazar,
Baleshwar- 756003

First Edition :
**June, 2003**

Price :
**Rs. 20/- Only**

**ISBN-81-87348-30-5**

# ସୂଚୀ

# ଅଜା ଯାଇଥିଲେ ହାଟକୁ



ଅଜା ଯାଇଥିଲେ ହାଟକୁ
ଚାଲିକି ଗହୀର ବାଟକୁ
ଭଲ ଚିଜଟିଏ ଆଣିବ କହିକି
ଆଇ ଗଲା ନଈ ଘାଟକୁ ।





ଭଲ ଚିଜ ଅଜା ଖୋଜିଲେ
ଭିତରେ ଦି' ଥର ହଜିଲେ
ଶେଷକୁ ଦୋକାନେ ବହିଟିଏ ଦେଖି
ମଲାଟ ରଙ୍ଗରେ ମଜିଲେ ।



ଗପ ଥିଲା କେତେ ବହିରେ
ଛବି ଭରିଥିଲା ତହିଁରେ
ଅଜାଙ୍କୁ ଲାଗିଲା ଏହାଠାରୁ ଭଲ
ଚିଜ ଆଉ କିଛି ନାହିଁରେ ।

କିଣିନେଲେ ଅଜା ବହିଟି
ଖୁସି ତାଙ୍କ ନୁହେଁ କହିଚି
ବଡ ବଡ ଖୋଜ ପକାଇ ଫେରିଲେ
ବଇଶାଖ ତାତି ସହିଚି ।

ଘରେ ପହଞ୍ଚିଲେ ରାତିକି
ଡାକିବି କହିଲେ ନାତିକି
ସଅଳ ସଅଳ ଆଣିଲୁ ବାବୁରେ
ଇଆଡେ ଟିକିଏ ବତୀକି ।



ଆଈ ଠିଆହେଲା ପାଖରେ
ନାତୁଣୀକି ଧରି କାଖରେ
ତରତର କରି ବଖାଣିଲେ ଅଜା
ଚଷମା ସଳଖି ନାକରେ ।

ପାଠପଢ଼ା ଏବେ ଶିଖୁଚ
ପୁଅକୁ ଚିଟାଉ ଲେଖୁଚ
ଖାତା, ବସ୍ତାନି ନିଇତି ଦେଖୁଛି
ଯତନେ ସାଇତି ରଖୁଚ ।

ବହିଟିଏ ତେଣୁ ଆଣିଲି
ଭଲ ଚିଜ ବୋଲି ମଣିଲି
ଆଈ ହସି କହେ, ବୁଢ଼ିଆ ବୋଲିକି
ଆଜିଠୁ ତୁମକୁ ଜାଣିଲି ।



# ବାପା କରିଛନ୍ତି ବାରଣ



କୁନୁମୁନି ହାତେ ରୂପାର ଚୁଡ଼ି
ଚୁଡ଼ିରେ ବସିଛି ପୋହଳା
କୁନୁମୁନି ଖାଏ ପିଜୁଳି, ଜାମୁ
ତାଳସଜ ଆଉ ଅଁଳା ।
ବାପା କହିଛନ୍ତି ଖାଇଲେ ଫଳ
ବଳ ଆସିଥାଏ ଦେହରେ
କୋଳି, କରମଙ୍ଗା, କଦଳୀ ଖାଅ
ଗାଆଁରେ ରହ ବା ସହରେ ।



କୁନୁମୁନି କାନେ ରୂପାର ଫୁଲ
ଫୁଲରେ ବସିଛି ଚୁମ୍‌କି
କୁନୁମୁନି ଖାଏ ବତୁରାବୁଟ
ସୁଖ ପାଏ ନାହିଁ ନିମ୍‌କି ।
ବାପା କହିଛନ୍ତି ତେଲରେ ଛଣା
ଦରବ ନୁହଁଇ ହିତକୁ
ସିଝା ତରକାରୀ ସବୁଠୁ ଭଲ
ଗରମକୁ ଅବା ଶୀତକୁ ।



କୁନୁମୁନି ପାଦେ ରୂପାର ମଲ
ମଲରେ ବସିଛି ଘୁଙ୍ଗୁର
କୁନୁମୁନି ଖାଏ ତବତ ଭାତ
ସାଥିରେ ଟଟ୍‌କା ମାଗୁର ।
ବାପା କହିଛନ୍ତି ବାସି ଦରବ
ବେମାରିର ମୂଳ କାରଣ
ମାଛି ବସା ଚିଜ ଖାଏନି କୁନି
ବାପା କରିଛନ୍ତି ବାରଣ ।



# ସୁଖୀ ରହିବାର ସହଜ ବାଟ

ରାଜା ଯାଇଥିଲେ ନଗରବୁଲି
ଦେଖିଲେ ଗୋଟିଏ ଗୁଡିଆ
ବିକିରି କରୁଛି ଉଖୁଡା, ଖଇ
ହାଟ ପାଖେ ତା' ର କୁଡିଆ ।

କାମ କରୁକରୁ ଗାଉଛି ଗୀତ
ହରଷ ମନରେ ବସିକି
ଖୁସି ଝଲମଲ ମୁହଁଟି ତା' ର
କଥା ସେ କହୁଛି ହସିକି ।



ପଚାରିଲେ ରାଜା ଗୁଡିଆ କହ
ଏତେ ଖୁସି ତମେ କେମିତି ?
ବତେଇଦବ କି ଉପାୟ ମତେ
ଜୀବନ ଜୀଇଁବି ସେମିତି ।

ଗୁଡିଆ କହଇ ରାଜନ ଶୁଣ
ମଣିଷ ସିନା ମୁଁ ଗରିବ
ଖୁସି ରହିବାର ଜାଣିଛି ବାଟ
ତୁମେ କି ସତେ ତା କରିବ ?

ମିଛ ମୁଁ କହେନି, ଦିଏନି ଦୁଃଖ
ମଣିଷ ବା ପଶୁପକ୍ଷୀ କି
ଉଧାର କରେନି, ଖରଚ କରେ
ପଇସା ମୋ ଜଗି ରଖିକି ।

କରେ ନାହିଁ ଲୋଭ ଧନରେ କା' ର
ହିଂସା କରେ ନାହିଁ କାହାକୁ
ନିଇତି ସଂଜରେ ନୁଆଁଏ ମଥା
ଦିଅଁଙ୍କର ଚଉବାହାକୁ ।

ଖଟି ଖାଇବାଟି ଧରମ ମୋର
ନିଦ ଯାଏ ତେଣୁ ଆରାମେ
ଶୋଚନା ନକରି ଆଦରି ନିଏ
ଯାହା ଲେଖା ଅଛି କରମେ ।



ଗୁରୁଜନଙ୍କୁ ମୁଁ ଭକତି କରେ
ବଚନ କହେ ମୁଁ ମଧୁର
ହିତକଥା ପଢ଼େ ପାଇଲେ ବେଳ
ଜୀବନ ଜୀଏଁ ମୁଁ ସାଧୁର ।



ସାରା ସଂସାରକୁ ଆପଣା ମଣେ
କିଏ ଭାଇ କିଏ ପିଇସା
ସୁଖଶାନ୍ତି ତେଣୁ ସହଜେ ପାଏ
ନାହିଁ ସିନା ବେଶି ପଇସା ।

ଘୋଡାରୁ ଓହ୍ଲାଇ, କୁଣ୍ଢାଇ ଧରି
ଗୁଡିଆକୁ ରାଜା କହିଲେ
ସୁଖୀ ରହିବାର ସହଜବାଟ
ଶିଖାଇଲ ଆଜି ପହିଲେ ।

✿✿✿

# ଉପହାର



ଜନମ ଦିନରେ ଚକୋଲେଟ୍ ଦେଲେ ଭାଇନା
ରଙ୍ଗତୂଳୀ ଦେଲା ପଡିଶା ଘରର ମଇନା
ଛିଟଜାମାଟିଏ କିଣି ଆଣିଥିଲେ ମାଉସୀ
ହାତକୁ ଦେଲେ ମୋ ଆଦରରେ ଦେଇ ଆଉଁଷି
ନୂଆ ଜୋତା, ମୋଜା ଆଣିଥିଲେ ବଡ ଭାଉଜ
ମାମୁ ଦେଲେ ପେଣ୍ଡୁ, ଖେଳିଲି କରିକି ମଉଜ ।





ଲୁଡୁପଟାଟିଏ ଜେଜେବାପା ଦେଲେ ଆଣିକି
ପାଠପଢ଼ା ସାରି ଖେଳ ଖେଳେ ବୋଲି ଜାଣିକି
ନାନୀ କିଣିଦେଲା ନାଲିଚୂଡି ଯାଇ ବଜାର
ବୋଉ ଦେଲା ଗୋଟେ ଖେଳଣା ଭାରି ସେ ମଜାର
ବାପା ଦେଲେ କିନ୍ତୁ ଛବିବାଲା ଗୀତ ବହିଟି
ସବୁଠାରୁ ଭଲ ଉପହାର ଥିଲା ସେଇଟି ।



# ସପ୍ତାହ



ସୋମବାର ଦିନ   ବଡ ଦେଉଳରେ
ବୋଉ ଭାଙ୍ଗିଥିଲା ନଡିଆ
ଭୋଗ କରିଥିଲା   ଉଖୁଡା, ନବାତ
ଚିନି ପାଗ କୋରା ବଡ଼ିଆ ।



ମଙ୍ଗଳବାରରେ   ପଡିଲା ଏସନ
ଜନମ ଦିନଟି ମୋହର
ଜାମା କିଣିଥିଲି   ବାପାଙ୍କ ସାଥିରେ
ବୁଲିବୁଲି ସାରା ସହର ।

ବୁଧବାର ଦିନ   ଗାଆଁରୁ ଆସିଲେ
ମାରୁତି ଗାଡିରେ ମଉସା
ମୁଣିରେ ଧରିକି   ବାରି ବାଇଗଣ
ତାଙ୍କର ପରିବା ବେଉସା ।





ଗୁରୁବାର ଦିନ ଚଉରାମୂଳରେ
ବୋଉ ଦେଇଥିଲା ମୁରୁଜ
ସକାଳୁ ସକାଳୁ ଗାଧୁଆ ସାରିକି
ନଉଥୁଣ୍ଣୁ ଶିଶୁ ସୂରୁଜ ।



ଶୁକୁରୁବାରକୁ ଯାଇଥିଲୁ ଆମେ
ଭାଇଙ୍କ ସାଥିରେ ହାଟକୁ
ବିରିବରା, ବୁନ୍ଦି, ମିଠେଇ ଖାଇକି
ଫେରିଥିଲୁ ରାତି ଆଠକୁ ।



ଶନିବାର ଦିନ ସାଥିପିଲା ମିଶି
ବୁଲି ଯାଇଥିଲୁ ପୁରୀକି
ଲେଉଟାଣିବାଟେ ଧଉଳିପାହାଡ
ଆସିଥିଲୁ ପରା ଘୂରିକି ।



ରବିବାର ସାଥେ ସରି ନୁହେଁ କେହି
ଛୁଟିଦିନ ପରା ସେଇଟି
ଖେଳ ଖେଳୁ ଖେଳୁ ବେଳ କଟିଯାଏ
ସୋମ ଆସେ ପୁଣି ଲେଉଟି ।





# ଟୁକୁନାର ଥିଲା ଜନମ ଦିନ



ଟୁକୁନାର ଥିଲା ଜନମ ଦିନ
ମାଆ କରିଥିଲେ ପାୟସ
ଗେଲ ବସରିଆ ପୁଅ ଯେ ସିଏ
ଛଅ ଜମା ତା' ର ବୟସ ।
ଗହଳଚହଳ ଘରଟା ସାରା
ଟୁକୁନା କରଇ ମଉଜ
ନୂଆ ଜାମା, ଜୋତା ବଜାର ଯାଇ
କିଣି ଆଣିଛନ୍ତି ଭାଉଜ ।
ଖୋଲା ଅଗଣାରେ ଖଲିପତର
ପିଲେ ବସିଗଲେ ଧାଡ଼ିରେ
ଆରିଷା, ଏଣ୍ଡୁରି, ଖେଚେଡ଼ି, କ୍ଷୀରି
ମାଆ ଦେଲେ ଯେବେ ବାଢ଼ିରେ ।



ଦାଣ୍ଡରେ ଶୁଭିଲା ଭିକାରୀଟିର
ଭୋକିଲା କଣ୍ଠର ଡାକରା
ଟୁକୁନା ଦଉଡେ ପାଖକୁ ତା' ର
ଖଲିରୁ ଉଠାଇ କାକରା ।
ନିଜ ପତରର ଖେଚେଡି ଭାତ
ତରକାରୀ ଆଉ ପାୟସ
ଭିକାରୀ ଥାଳରେ ଟୁକୁନା ଢ଼ାଳେ
ଛଅ ଜମା ତା' ର ବୟସ ।
ରାଗିଲକି ମାଆ ପଚାରେ ଟୁକୁ
ମାଆ କହିଥାନ୍ତି ଧନରେ
ସବୁଠାରୁ ବଡ କାମ ତୁ କଲୁ
ଆଜି ତୋ ଜନମ ଦିନରେ ।



# ଝମର ଝାଇଁ

ଝମର ଝାଇଁ
କୁନା, ମୁନା ଦୁଇ ଯାଆଁଳା ଭାଇ
ଦିନଟିଏ ଗଲେ ହାଟ,
ମନ ମଉଜରେ ବାପାଙ୍କ ସାଥେ
ଚାଲିକି ଗହୀର ବାଟ ।

କହିଲା କୁନା
କିଣିବି ନେଳିଆ କାମିଜ୍‌କନା
ମୁଣିରୁ ପଇସା କାଢ଼ି,
ଖେଳିବା ପାଇଁକି ଖୋଜିକି ନେବି
ଚକଲଗା ଘୋଡାଗାଡି ।



କହିଲା ମୁନା
ଜେଜେପାଇଁ ନେବି ଛତୁଆ ଚୂନା
ବୋଉ ପାଇଁ ନେବି ଶାଢ଼ୀ,
ନିଜପାଇଁ ବହି ଯହିଁରେ ଥିବ
ଗୀତ ଲେଖା ଧାଡିଧାଡି ।



# କୁହ ମତେ ମାଆ ଗୋ

କୁହ ମୋତେ ମାଆ ଗୋ !
　କିଏ ସିଏ ସରଜିଲା
　　ଥିରିଥିରି ବାଆ ଗୋ
　ରଙ୍ଗକଲା ଗୋଲାପକୁ
　　କିଏ ନାଲି ଅବିରେ
　ମୟୂରର ପୁଚ୍ଛ କିଏ
　　ଭରିଦେଲା ଛବିରେ ।



କୁହ ମୋତେ ମାଆ ଗୋ !
　ନଈନାଳ ତୋଟାମାଳ
　　ଦେଖୁଛି ମୁଁ ଯାହା ଗୋ
　ପାହାଡ ଓ ବନବିଲ
　　ଘାସଭରା ପଡିଆ
　କିଏ ସତେ ତିଆରିଲା
　　କରି ଏତେ ବଢ଼ିଆ ।

କୁହ ମୋତେ ମାଆ ଗୋ !
କାହା କଥା ମାନି ଗଛ
ବିଞ୍ଛିଦିଏ ଛାୟା ଗୋ ।
କାହାକଥା ମାନି ଜହ୍ନ
ଉଇଁ ଆସେ ରାତିରେ
କିଏ ଭରେ ମିଠାମହୁ
ସଜ ଫୁଲ ଛାତିରେ ।



କହନ୍ତି ମା' ବାବୁରେ,
ନୟନେ ତୋ ଚଉଦିଗେ
ଯାହା ଦେଖୁ ସବୁରେ
ଈଶ୍ୱରଙ୍କ ସରଜନା
ମନେରଖ କଥାଟି
ତାଙ୍କ ପାଖେ ନିତି ଦିନ
ନୁଆଁଇବୁ ମଥାଟି ।

✿✿✿

# ନିଦ ମାଉସୀ



ନିଦ ମାଉସୀ
କାହ୍ନୁକୁ ଟିକିଏ ହାତରେ ତୋହର
ଦେ' ଆଉଁଷି ।

ଝିରି ଝିରି ଝିରି ପବନ ବହଇ
ଫଗୁଣ ମାସ
ପବନେ ଭାସଇ ପେଛି ପେଛି ସଜ
ବଉଳ ବାସ ।
ଝରକା ଫାଙ୍କରେ ବହିଆସେ ସେଇ
ଶୀତଳ ବାଆ
ତେବେ ବି କହ୍ନେଇ ଶୋଉନି, ସଂଜରୁ
ଧରିଛି ରାହା ।
ଆଉଁଷି ଦେଲେ ତୁ ବୁଜିଯିବ ତା' ର
ଆଖିର ପତା
କହିବୁ ତାକୁ ତୁ ସପନରାଇଜ
ପରୀର କଥା ।



ସପନ ରାଇଜ ପରୀ ସେ ଯେ ତାଂର
ଡଉଲ ବେଶ
ଡେଣାରେ ବସାଇ କାହ୍ନୁକୁ ନବ ସେ
ଜହ୍ନର ଦେଶ ।
ଜହ୍ନମାମୁ ଦବ ରୂପା ଥାଳିଆରେ
ଖେଚେଡି ଭାତ
ଫୁଲର ଦୋଳିରେ ଝୁଲିବ ଧରିକି
କହ୍ନେଇ ହାତ ।
ଆକାଶର ଖୋଲା ଅଗଣାରେ
ଯହିଁ ଜୋଛନା ଧାରା
କାହ୍ନୁ ଖେଳୁଥିବ ତାରାଙ୍କ ଗହଣେ
ରାତିଟା ସାରା
ସପନେ ସପନେ ସକାଳ ହୋଇବ
ପାହିବ ନିଶି ।

ନିଦ ମାଉସୀ
କାହ୍ନୁକୁ ଟିକିଏ କଅଁଳ ହାତରେ
ଦେ' ଆଉଁଷି ।



# ଆସ ଆସ ପାରା ଯୋଡିକ

ଆସ ଆସ ପାରା ଯୋଡିକ
ମୋର ପିଣ୍ଡାରେ ବସ ।
ଖାଇବାକୁ ଦେବି ଚାଉଳ
କ୍ଷୀରି ନଡିଆ ରସ ।।

ପଦୁଅଁ ପୋଖରୀ ମଧୁର
ପାଣି ଗରାରେ ଅଛି ।
ଶୋଷ ଲାଗିଗଲେ ବୁଡାଇ
ଥଣ୍ଟ ପିଇବ କିଛି ।।

ନିଦ ଲାଗିଗଲେ ଶୋଇବ
ଦେବି ସଉପ ପାରି ।
ଶୀତ ଲାଗିଗଲେ ଘୋଡେଇ
ଦେବି ବୋଉର ଶାଢ଼ୀ ।।

ଥକା ଲାଗିଗଲେ ଆଉଁଷି
ଦେବି ନରମ ଡେଣା ।
ଉଡିଯିବ ରାତି ପାହିଲେ
ଖୁଣ୍ଟି ସୋରିଷ, ଚଣା ।।

ବସା ବାନ୍ଧିଅଛ କେଉଁଠି
କେଉଁ ଦେଉଳ ଚୂଳେ ।
ଗାଆଁ ଆରପାରି ପାହାଡେ
ଅବା ଝରଣା କୂଳେ ।।

ଯିବା ଆଗୁ ତୁମ ଠିକଣା
ମୋତେ ଯିବ କି କହି ।
ରହିଯାଅ ଆଜି ରାତିକ
ସଂଜ ଆସୁଛି ନଇଁ ।।

ଘୁମୁରୁ ଘୁମୁରୁ ସୁରରେ ମିଶି
ଗାଇବା ଗୀତ ।
ଆସ ଆସ ପାରା ଯୋଡିକ
ଆସ ବସିବା ମିତ ।।



# ପ୍ରଜାପତି ଓ ମହୁମାଛି



ଚଇତି ପବନେ ଦୋହଲି ଦୋହଲି
ଫୁଲ ଖେଳୁଥିଲା ଦୋଳି
ସଜ ସକାଳର ଶୀତଳ ଶିଶିର
ଆପଣା ଦେହରେ ବୋଳି ।

ପ୍ରଜାପତି ଆଉ ମହୁମାଛି ଦିହେଁ
ଉଡିକି ଆସିଲେ ତହିଁ
ମହୁ ପିଇବାକୁ, ପ୍ରଜାପତି ରାଗି
ମାଛିକୁ ଉଠିଲା କହି ।



ଛାର ଜୀବଟିଏ ରୂପଭେକ ନାହିଁ
ନାହିଁ ବି ରୂପେଲୀ ଡେଣା
ହେଉ ଆଗଭର ମହୁ ପିଇବାକୁ
ଫେରି ଯା ଖୋଜି ତୋ ଫେଣା ।

ଚାହିଁ ଦେଖ୍ ମତେ କେଡେ ଉଊଲ ମୁଁ
କେମିତି ଛିଟର ସାଜ
ବହପ କରିକି ବସୁଛୁ କତିରେ
ଲାଗେନି ଟିକିଏ ଲାଜ ?



ପେଟ ଭରି ଆଗ   ପାଖୁଡ଼ା ନିଗାଡ଼ି
ମହୁ ପିଇଯାରେ ମୁହିଁ
ବଳିବ ଯଦିବା   ଟୋପାଏ ତହିଁରୁ
ଶେଷକୁ ଚାଖିବୁ ତୁହି ।

କଥା ଶୁଣି ତାର   ଗୁଣୁଗୁଣୁ ସୁରେ
ଧୀରେ କହେ ମହୁମାଛି
ମହୁ ସଞ୍ଚେ ମୁହିଁ   ଆନ ପାଇଁ ତାହା
ପିଅ ତମେ ନାଚି ନାଚି ।

ଫେଣାରେ ସାଇତା   ସେଇ ମହୁ ମୋର
ମଣିଷ ଲଗାଏ କାମେ
ମିଛଟାରେ ସିନା   ଅପବାଦ ଏତେ
ଦେଉଛ ମୋହରି ନାମେ ।

ମାଛିର ଉତର   ଶୁଣି ପ୍ରଜାପତି
କହେ ସତକଥା ଭାଇ
ରୂପ ଅଛି ସିନା,   ହେଲେ ତୁମପରି
ଗୁଣ ମୋ ପାଖରେ ନାହିଁ ।

ଖାଲି ରୂପ ସେ ଯେ   ଅସାର ଅଟଇ
ଗୁଣ ଇ ମଥାର ଟୀକା
ସବୁ ରଂଗ, ସବୁ   ଚହଟ ପଡ଼ଇ
ଭଲ ଗୁଣ ପାଖେ ଫିକା ।



# ଚେର

ତୁମେ ଦେଖିଥାଅ    ତାଜା ଛନଛନ
ସବୁଜ ପତର ଶୋଭା
ନହକା ଡାଳରେ    ଫଳ ପେଛି ପେଛି
ତାଙ୍କା ଫୁଲ ମନଲୋଭା ।

ତୁମେ ତ ଜାଣନି    ତାଙ୍କୁ ଦିଏ କିଏ
ମାଟିରୁ ଟାଣିକି ରସ
ନାଆଁ ମୋର ଚେର    ଗଛକୁ ବଞ୍ଚାଏ
ବୋଲି କି ରହିଛି ଯଶ ।

ଆକାଶୁ ଝରିଲେ    ଆଷାଢ଼ର ଧାରା
ପିଏ ତାହା ପେଟ ଭରି
ଡାଳରୁ ଡାଳକୁ    ପଠାଏ ସେ ପାଣି
ହବ କିଏ ମୋ' ସରି ?



ତୁମେ ଦେଇଥାଅ ଗଛର ମଳାରେ
ଭଲିଭଲି କେତେ ସାର
ମୋ' ଯୋଗୁ ତାହା- ଶାଖାରେ ପହଞ୍ଚେ
ବାରମ୍ବାର, ବାରମ୍ବାର ।

ନିମ, ଜାମୁ, କଷି, ସପେଟା, ପଣସ
ଶାଗୁଆନ, ପିଆଶାଳ
ମୋ ଲାଗି କରେନି ପରୁଆ ଆସିଲେ
ଝଡି ବରଷାର କାଳ ।



ମୋ' ଲାଗି ଗଛ ଠିଆ ହେଇଥାଏ
ଆକାଶକୁ ଟେକି ମଥା
ଚେର ଶୁଖିଗଲେ ଗଛଟି ମରିଲା
ଏଇତ ଅସଲ କଥା ।

ଦୁବଘାସଠାରୁ ଦେବଦାରୁ ଯାଏ
ସଭିଙ୍କୁ ସଳଖି ଧରେ
ଚେର ମୁଁ ବସୁଧା ରସ ଟାଣି ଟାଣି
ଗଛକୁ ଗହଳ କରେ ।



# ନଈ

ହେବି ଯଦି କେବେ
　　ଅଙ୍କା ବଙ୍କା ନୀଳ ନଈଟି
କୁଳୁକୁଳୁ ସ୍ୱରେ
　　କେତେ କଥା ଯିବି କହିଟି ।

ବହିଯିବି କୁନି
　　ବାଲି ଗରଡାର ଶେଜରେ
କେତେବେଳେ ଧୀରେ
　　କେତେବେଳେ ଅଜା ତେଜରେ ।



ବରଷା ଋତୁରେ
　　ପାଣିରେ ଖେଳିବ ଭଉଁରୀ
କାତ ମାରି ନାଆ
　　ବାହି ନେଉଥିବ ନାଉରୀ ।

ଢେଉ ଚମକିବ
　　ପୂନେଇଁ ଜୋଛନା ସାଥିରେ
ରୂପେଲୀ କାତିର
　　ମାଛ ପହଁରିବେ ଛାତିରେ ।

ଘାଟେ ଘାଟେ ମୋର
କେତେ ଭଳି ହାଟ ବସିବ
ଶରତ ଆସିଲେ
କାଶଫୁଲେ ପଠା ହସିବ ।

ଗାଆଁ ନୂଆବୋହୂ
ପାଣି ବୋହିନେବେ ଗରାରେ
କୂଅ ଓ ପୋଖରୀ
ଶୁଖିଗଲେ କେବେ ଖରାରେ ।

କୂଳେକୂଳେ ମୋର
ପଟୁମାଟି ଭାରି ସରସା
ଜମା ହବ ହେଲେ
ଆଷାଢ଼ ମାସରେ ବରଷା ।

ସେ ମାଟିର ରସ
ପିଇ ଧାନକେଣ୍ଡା ପାଚିବ
ଚାହିଁ ତାକୁ ଚାଷୀ
ହରଷ ମନରେ ନାଚିବ ।

✿✿✿

# ଲାଗେ ଭାରି ବଢ଼ିଆ

ଲାଗେ ଭାରି ବଢ଼ିଆ
ବାରିପଟ ଗୁଡିଆ
ଛାଣୁଥିବା ଫେଣୀଗଜା
ତାଜା କୁଡୁମୁଡିଆ ।



ଲାଗେ ଭାରି ବଢ଼ିଆ
ଚେନାଚୂର ପୁଡିଆ
ମୁସୁମୁସୁ ମୁଢ଼ି ସାଥେ
ମିହିକୋରା ନଡିଆ ।



ଲାଗେ ଭାରି ବଢ଼ିଆ
ମିଠା ଛେନା ତାଡିଆ
ଛନଛନ ମଦରଙ୍ଗା
ନଈକୂଳ ଆଡିଆ ।

ଲାଗେ ଭାରି ବଢ଼ିଆ
ମେଘ ଘଡଘଡିଆ
ଚୂନାଚୂନା ବାଦଲରେ
ମେଘ ଯେବେ ଘୋଡିଆ ।

ଲାଗେ ଭାରି ବଢ଼ିଆ
ଉବୁଟୁବୁ ଗଡିଆ
ବିଲପାଖେ ବସିଥିବା
ବଗ ଲମ୍ବା ଗୋଡିଆ ।

ଲାଗେ ଭାରି ବଢ଼ିଆ
ମେଲା ଘାସ ପଡିଆ
ଧାଡି ଧାଡି ଫୁଲଗଛ
ମୂଳେ ଯାର ପିଡିଆ ।



ଲାଗେ ଭାରି ବଢ଼ିଆ
ଯାତ ଗଡଗଡିଆ
ଗାଆଁ ଦାଣ୍ଡେ ଯାଉଥିବା
ନାଥଯୋଗୀ ଦାଢ଼ିଆ ।



ଲାଗେ ଭାରି ବଢ଼ିଆ
ଗେରୁ ଲିପା କୁଡିଆ
ନାନୀ ପିନ୍ଧା କୋରାଶାଢ଼ୀ
ନାଲି କୁମ୍ଭ ଧଡିଆ ।

ଲାଗେ ଭାରି ବଢ଼ିଆ
ପଢ଼ିବାକୁ ଓଡିଆ
ବୋଉ ଯେବେ ଡାକେ ଟିକେ
କୋଳକୁ ମୋ ବୁଢ଼ିଆ ।



# ଚାରିଭାଇଙ୍କ କଳି

ଦିନଟିଏ ଭାରି    ଲାଗିଲେ କଳି
ନାକ, କାନ, ପାଟି, ଆଖି
ବିଚାର ପାଇଁକି    ଜେଜେଙ୍କୁ ଯାଇ
ଘରକୁ ଆଣିଲେ ଡାକି ।





ନାକ କହେ କିଏ    ପବନ ଟାଣି
ଛାତିକୁ ତମର ନିଏ
କିଆ, କେତକୀର  ମଧୁର ବାସ
କିଏ ବା ତୁମକୁ ଦିଏ ।



କାନ କହେ ଆହା  କିଏ ସେ ଶୁଣେ
ବାଜିଲେ ତେଲିଙ୍ଗି ବାଜା
ମୋ ବିନା ବଧିର    ମଣିଷ ଜାତି
ସାଥେ ମୋ ସରିକେ ଯା ଯା ।



ପାଟି କହେ ତମେ  କାହାର ଯୋଗୁ
ଭୋଜନ ସୁଆଦ ନିଅ
କାହା ଯୋଗୁ ଖାଅ  ପିଜୁଳି, ଜାମୁ
ନିରୋଗ ରଖେ ଯେ ଦିହ ।

ଆଖି କହେ କିଏ  ଚିହ୍ନାଏ ରଂଗ
କାହା ଯୋଗୁ ପଢ଼ ପାଠ
ଚାଲିଲ ଦେଖିବା  ନୟନ ମୁଦି
ଦୁଇପା ଗହୀର ବାଟ ।



ସବୁ ଶୁଣିସାରି  ଥାପୁଡି ପିଠି
ଢେଙ୍କେ ଦେଇଥାନ୍ତି ମତ
ସଭିଏଁ ସମାନ,  ନଥିଲେ ତମେ
ଭାରି ଆମେ ହନ୍ତସନ୍ତ ।

ଚାରିହେଁ ମିଶିକି  ଆମରି ପାଇଁ
କାମକର ଦିନରାତି
କେହି ବଡ ନୁହେଁ,  ନୁହେଁ କେ ସାନ
ସଭିଏଁ ଆମରି ସାଥୀ ।



# ମାଆ ଗୋ ମାଆ

ମାଆ ଗୋ ମାଆ !
ହୁଅନ୍ତି ଯଦି ମୁଁ ଫଗୁଣ ମାସର
ଦକ୍ଷିଣା ବାଆ ।
ଛପିଛପି ତମ ପଣତକାନିରେ
ଖେଳନ୍ତି ଖେଳ
ଅଗଣାରେ ଯେବେ ବସନ୍ତ ଆସିକି
ବୁଡିଲେ ବେଳ ।

ମାଆ ଗୋ ମାଆ !
ହୁଅନ୍ତି ଯଦି ମୁଁ ପାଲ ତୋଳା ଏକ
ସବୁଜ ନାଆ
ନେଇକି ତୁମକୁ ଯାଆନ୍ତି ଭାସି ମୁଁ
ଦରିଆ ପାରି
ଦେଖିବା ପାଇଁ କି କୁହୁକ ରାଇଜ
ବରୁଣ ପୁରୀ ।

ମାଆ ଗୋ ମାଆ !
    ହୁଅନ୍ତି ଯଦି ବା ରୂପ ନଗରୀର
        ମୁଁ ବାଦ୍‌ଶାହା
    ରଖନ୍ତି ତୁମକୁ କେତେ ଯତନରେ
        ଉଆସେ ମୋର
    ପରଶି ଦିଅନ୍ତି ପିଠା, ପୁଳି ଆଉ
        ଲବଣୀ, ସର ।

ମାଆ ଗୋ ମାଆ !
    ହୁଅନ୍ତି ଯଦି ମୁଁ ଘଞ୍ଚ ବରଗଛ
        ଶୀତଳ ଛାୟା
    କଦବା କେମିତି ଛାଇରେ ମୋହର
        ବସନ୍ତ ଯାଇ
    ଗୁଣୁଗୁଣୁ ସୁରେ ମନ ମତାଣିଆ
        ଗୀତଟି ଗାଇ ।

ମାଆ ଗୋ ମାଆ !
    ହୁଅନ୍ତି ଯଦି ମୁଁ ଫୁଲଟିଏ ସଜ
        ଶିଶିରେ ଧୁଆ
    ତୋଳିନେଇ ମତେ ଗଜରା ବନାନ୍ତ
        ଦିଅଁଙ୍କ ପାଇଁ
    ଖୋଜନ୍ତ ଇଆଡେ କଳାକାହ୍ନୁ ମୋର
        ଗଲାରେ କାହିଁ ?

✿✿✿

# ମେଘ ମୋତେ ନେଇଯାଆ



ମେଘ ମୋତେ ନେଇଯାଆ
ଆଜି ତମ ସାଥିରେ
ଖରା ଭିଜାଦିନ ଆଉ
ଅନ୍ଧାରୁଆ ରାତିରେ
ଟୁପ୍‌ଟୁପ୍ ଝରିବା
ଦରମଲା ଦୁବ ଘାସେ
ଶ୍ୟାମ ରଂଗ ଭରିବା ।

ନଈ ମତେ ନେଇଯାଆ
ଆଜି ତମ ସାଥିରେ
କୁଳୁକୁଳୁ ଗୀତ ସୁରେ
ଦିହେଁ ଯିବା ମାତିରେ
ଟପି ଗାଆଁ ନଗର
ଅଙ୍କାବଙ୍କା ବହିଯିବା
ଭେଟିବାକୁ ସାଗର ।

ବାଆ ମୋତେ ନେଇଯାଆ
ଆଜି ତମ ସାଥିରେ
ବନେ ଯେବେ ଫୁଟିଯିବ
ଫୁଲ କେତେ ଜାତିରେ
ବାସ ତାର ଲୁଟିକି
ବାଟୋଇକି ଆଉଁଷିବା
ସନ୍‌ସନ୍ ଛୁଟିକି ।

ପକ୍ଷୀ ମୋତେ ନେଇଯାଆ
ଆଜି ତମ ସାଥିରେ
ନିରିଜନ ଆକାଶରେ
ଉଡି ଉଡି ଶାନ୍ତିରେ
ନାନା ଦେଶ ବୁଲିବା
ଥକାହେଲେ ନୁଆଁଣିଆ
ଡାଳେ ବସି ଝୁଲିବା ।



# ଦୁଇଆଈଙ୍କ କାହାଣୀ

ଓଲି ଆଈ ଆଉ  ବୁଲି ଆଈ ଦିହେଁ
ଆମରି ଘରର ପଡ଼ିଶା
ସଭିଏଁ କହନ୍ତି  କେହି ନୁହେଁ କାଳେ
ବୁଲି ଆଈ ମାଆ ସରିସା ।
ଓଲି ଆଈ ଘର  ଭାରି ଅସଜଡ଼ା
ଚଟାଣ ମଇଳା କୋତରା
ବୁଲି ଆଈ ଘର  ଗୋବର ମାଟିରେ
ଲିପା ହୋଇ ସଫା ସୁତରା ।

ଓଲି ଆଈ ଦାଣ୍ଡ  ମେଲା ଅଗଣାରେ
ଘର କରିଥାଏ ବିଲେଇ
ତୁଳସୀ ଦୋହଲେ  ବୁଲି ଆଈ ମାଆ
ଅଗଣାରେ ଡାଳ ମେଲେଇ ।
ଅଳସୁଆ ଓଲି  ଆଈମା କାନ୍ଥରୁ
ମାଟି ଖସିଲାଣି ଛେଲାଏ
ବୁଲି ଆଈ କାନ୍ଥ  ଝୋଟିରେ ଚମକେ
ଦେଖି ଖୁସି ସବୁ ପିଲାଏ ।

ଓଲି ଆଈ ଘର      ଚାରିପଟେ ବଢ଼େ
କନସିରି ଆଉ ଅରଖ
ଫୁଲେ ଫୁଲେ ସାଜି      ବୁଲି ଆଈ ବାଡ
ଦିଶେ ସବୁଠାରୁ ଫରକ ।
ବୁଲି ଆଈ ଭାଷା      ମହୁ ଢୁଡୁବୁଡୁ
ମନଲୋଭା ତା' ର ହସଟି
କଡାକଥା ଯୋଗୁ      ଓଲି ଆଈମାର
ଗାଆଁ ସାରା ଅପଯଶଟି ।

ଓଲିଆଈ ସାରା      ଜୀବନେ କାହାକୁ
ବାଢ଼ିନି ମୁଠିଏ ପଖାଳ
ବୁଲିଆଈ ଦିଏ      ଦୁଃଖୀକୁ ଆଶ୍ରା
ସଂଜ ହେଉ ଅବା ସକାଳ ।
ଓଲି ଆଈ ମୁହଁ      ଚାହାନ୍ତିନି କେହି
କେହି ନୁହେଁ ତା' ର ସାହାରେ ।
ବୁଲି ଆଈ ମାଆ      ଗୁଣ କୀରିତନ
ଲୋକେ କରୁଥାନ୍ତି ଗାଆଁରେ ।



# ଆ' ଜହ୍ନମାମୁ ଆ'

ଆ' ଜହ୍ନମାମୁ ଆ'
କୁନୁମୁନି ସାଥେ ସଂଜରେ ଖେଳି
ସକାଳେ ଲେଉଟି ଯାଆ
ଆକାଶ ପରୀର ରୂପେଲୀ ଡେଣା
ଆସିଯା ତହିଁରେ ବସି
ଅଳି କରେ କୁନି ଖାଇବ ଭାତ
ଦେଖିଲେ ସରଗ ଶଶୀ ।

ଆ' ରେ ଚଢ଼େଇ ଆ'
କୁନୁମୁନି ସାଥେ ସକାଳେ ଖେଳି
ସଂଜକୁ ଲେଉଟି ଯାଆ
ସାଗର ସେପାରି ସବୁଜ ଦ୍ୱୀପ
ଦ୍ୱୀପରେ ଦୋହଲେ ଲତା
ଚୁପିଚୁପି କୁନି କୋଳରେ ବସି
କହିଯା ତାହାରି କଥା ।

ଆ' ରେ ବାଦଲ ଆ'
କୁନୁମୁନି ସାଥେ ଆଷାଢ଼େ ଖେଳି
ଅଶିଣେ ଲେଉଟି ଯାଆ।
ବରଷାର ସୁର ରୁମୁଝୁମୁ
ଖାଇଯା ନୂପୁର ସରି
ଉପହାର ଦେଇ କୁଆପଥର
କୁନିର ପାପୁଲି ଭରି ।

ଆ' ରେ ପବନ ଆ'
କୁନୁମୁନି ସାଥେ ଫଗୁଣେ ଖେଳି
ଚଇତେ ଲେଉଟି ଯାଆ।
ଫୁଲବନୁ ଫୁଲ ବାସନା ଲୁଟି
ବହିଯାଆ ଥିରିଥିରି
ହାଲୁକା ହାତରେ ଛୁଇଁଯା, କୁନି
ହସୁଥିବ କିରିକିରି ।



# ସ୍ୱାସ୍ଥ୍ୟରକ୍ଷା



କୁନା ସୁଖପାଏ     ପିଜୁଳି, ପପେୟା
ପଣସ, ପାଳଙ୍ଗ, କାକୁଡି
ମୁନ୍ନା ଖାଇଥାଏ     ବରା, ଗୁଲୁଗୁଲା
ପିଆଜି ଅଥବା ପକୁଡି ।

କୁନାର ମୁହଁଟି     ଡଉଲ ଡାଉଲ
ଭାତ ଖାଏ ସିଏ ତତଲା
ତେଲ ଜରଜର     ବାସି ଚିଜ ଖାଇ
ମୁନ୍ନା ହେଇଯାଏ ପତଳା ।



ସଅଳ ସଅଳ     ଶେଜରୁ ଉଠିକି
କୁନା ସଫା କରେ ଦାନ୍ତକୁ
ମୁହଁ ନଧୋଇକି     ମୁନ୍ନା ଖାଇଥାଏ
ମାଆ ବାଢ଼ିଦବା ଭାତକୁ ।

ବୁଡ ଦିଏ କୁନା     ବହନ୍ତା ପାଣିରେ
ଦେହରେ ଲଗାଇ ତଇଳ
ମୁନ୍ନା ପାଟିକରେ     କିଆଁ ଆଜି ମତେ
ଗାଧେଇବା ପାଇଁ କହିଲ ?

କୁନାର ମଥାଟି  ତେଲ ଜୁକୁଜୁକୁ
କେଶ ହେଇଥାଏ ସାଉଁଳା
ଅଳରା ମଥାରେ  ମୁନ୍ନା ବୁଲୁଥାଏ
ଖେଳରେ ହୋଇକି ବାଉଳା ।

ପିନ୍ଧିଲା ବସନ  କାଚି ରଖେ କୁନା
ସୁତୁରା ତାହାର ଜାମାଟି
ଦୁନିଆ ଯାକର  ମଇଳା ହୁଅଇ
ମୁନ୍ନାର ପୋଷାକେ ଜମାଟି ।



ବଖରା ନିଜର  ସଫାରଖେ କୁନା
ଧୂଳି, ବାଲି ଦିଏ ଓଲେଇ
ଅଳିଆ ଫିଙ୍ଗିକି  ଏଠି ସେଠି ମୁନ୍ନା
ଘର ଛାଡି ଯାଏ ପଳେଇ ।

ଯତନ ନିଅଇ  ଯେହେତୁ ନିଜର
କୁନା ପଡେନାହିଁ ବାଧିକା
ଅବହେଳା ଯୋଗୁ  ମୁନ୍ନାକୁ ବେମାରି
ମାଡି ବସିଥାଏ ଅଧିକା ।



# ଶୀତଋତୁ

ମଗୁଶିର ମାସ     ସରିସରି ଯାଏ
ଥିରିଥିରି ଆସେ ପଉଷ
ସାନ ହେଇଆସେ   ଦିନତକ, ଆଉ
ରାତିର ବଢ଼ଇ ଆୟୁଷ ।

କେରି କେରି ଦୁବ   କଅଁଳ ପତରେ
ଜକଜକ କରେ କାକର
ଦାଉ ଦାଉ ରଙ୍ଗ    ଉତୁରି ଆସଇ
ମଉସୁମୀ ଫୁଲ ଯାକର ।

ଶିଶିର ବତୁରା     ସୋରିଷ କୁସୁମ
ଲହଡି ଭାଙ୍ଗଇ କ୍ଷେତରେ
ଲାଗେ ସତେ ଅବା     ଉଡାଏ କିଏ ସେ
ହଳଦୀ ରଙ୍ଗର ନେତରେ ।

ବସୁମତୀ ମାଆ     କଦବା କେମିତି
ପେଡିରୁ ତାହାର କାଢ଼ିକି
ପାହାନ୍ତି ପହରେ     ପିନ୍ଧିକି ବାହାରେ
କୁହୁଡିଆ ପାଟଶାଢ଼ୀକି ।

ବଗିଚାର ଘଞ୍ଚ     ବୁଦା ଛାଇ ଯାଏ
ଥାକ ଥାକ ଗେଣ୍ଡୁଫୁଲରେ
ସେବତୀ, ଜିନିଆ   ଧରାକୁ କରାଇ
ସରଗର ସମତୁଲରେ ।

ମାଡି ମାଡି ଯାଏ   ମଟରର ଲତା
ବଢ଼ି ବଢ଼ି ଯାଏ ପାଳଙ୍ଗ
ଗାଜର କଷିଟି     ଦିଶଇ ରୁଚିର
ପିନ୍ଧିକି ପୋଷାକ ନାରଙ୍ଗ ।



ଦିନମଣି ତେଜ     ନରମ ହୋଇଲା
ଖରା ହେଇଗଲା କଅଁଳ
ମନ ବଳୁନାହିଁ     ଶେଜର ଉଷୁମ
ଛାଡି ଉଠିବାକୁ ସଅଳ ।

କାଲୁଆ ପବନ    କାନେକାନେ କହେ
ଶୀତଋତୁ ଏବେ ଆସିଲା
ଶୀତଳ ହାତର     ହାଲୁକା ପରଶେ
ନିଦାଘ କଷଣ ନାଶିଲା ।



# କୋଳି

ଇଟିକିଲି ମିଟିକିଲି ଫୁଟିଗଲା କାଇଁଚ
ଟୁକୁଟୁକୁ ନାଲି ଯେବେ ପାଚେ କୋଳି ଭଇଁଚ ।
ବନେ ବନେ ଫଳିଥାଏ ମିଠାକୋଳି ଫାର୍‌ସା
ଜାମୁକୋଳି ପାଚିଯାଏ ଆସିଗଲେ ବର୍‌ଷା ।
ବରକୋଳି ଖଟା ଖଟା ବୋଉ କରେ ଆଚାର
ଭାତ ସାଥେ ଖାଇବାକୁ ମନ କରେ ବିଚାର ।
କ୍ଷୀରୀକୋଳି ପାଚିଗଲେ ଦିଶିଥାଏ କାଳିଆ
ସୁଆଦରେ ଲାଗେ କିନ୍ତୁ ଘନମହୁ ଭଳିଆ ।
ବେତ କୋଳି ଗୋଲ୍‌ଗୋଲ୍ କଷା ଲାଗେ ପାଟିକି
କେନ୍ଦୁକୋଳି ରସେ ଘନ ଖାଅ ତାକୁ କାଟିକି ।

ଉଞ୍ଚଗଛେ ପେଛି ପେଛି ଫଳିଥାଏ ଖଜୁରୀ
ମଞ୍ଜିଟିଏ ପୋତିଥିଲି ଉଠିଲାଣି ଗଜୁରି ।
ବାଦ୍‌ଶାହୀ କୋଳି ବୋଲି ପରିଚିତ ଅଙ୍ଗୁର
ଭାରି ଲୋଭ ଖାଇବାକୁ ସାନଭାଇ ଜଗୁର ।
ଲୁଣ ଲଙ୍କା ଦେଇ ଖାଅ କୁନିକୋଳି କଣ୍ଟେଇ
ଗାଁରୁ ଅଁ ଳା କୋଳି ଅଜା ଥିଲେ ପଠେଇ ।
ଖଟାମିଠା ମିଶାମିଶି ଲାଗେ କୋଳି ନହର
ଖାଇଥିଲି ଚେରୀକୋଳି ଯାଇଥିଲି ସହର ।
କାଶୀକୋଳି କଡମଡ, ଚୋବାଇକି ଖାଇବ
ଲିଚୁକୋଳି ଚାଖ ଥରେ, ମଜା ତାର ପାଇବ ।



# ଦଶହରା

ଅଶିଣ ମାସଟି ପଶିଲା
ଭୋଦୁଅ ତରକି ଖସିଲା
ବରଷକ ପରେ ଆଉଥରେ ପୁଣି
ଦଶରା ମେଲଣ ବସିଲା ।
ନଈପଠା ହସେ କାଶରେ
ଗଙ୍ଗଶିଉଳିର ବାସରେ
ପବନ ମହକେ, ଲତା ଭରିଯାଏ
ତୋଫା ଜହ୍ନିଫୁଲ ହାସରେ ।
ଆକାଶେ ବଉଦ ବୋଇତ
ଶୋଭା ତା' ର ନୁହେଁ କହିତ
ଶରତ ସୁଷମା ନିରେଖି ନିରେଖି
ମନ ହେଇଯାଏ ମୋହିତ ।

ଗହ ଗହ କରେ ବଜାର
ପରବ ଇଏ ଯେ ମଜାର
ମେଢ଼ ଦେଖିବାକୁ ବାହାର ହୁଅନ୍ତି
ମଣିଷ ହଜାର ହଜାର ।
ଦୁରୁଗା ମାଆଙ୍କ ମୂରତି
ଆଗରେ ହୁଅଇ ଆରତି
ଦରଶନ ପାଇଁ ମଣ୍ଡପ ଆଗରେ
ପିଲା ବୁଢ଼ା ଯେତେ ଭରତି ।
ଆସୁଛି କୁଆଁର ପୂନେଇଁ
ସଂଙ୍ଗୁଆ ଜହ୍ନକୁ ଅନେଇ
କୁଆଁରୀଏ ପରା ବରତ ରଖିବେ
ଛେନା, ଖଇ ଭୋଗ ବନେଇ ।



# ଭଲ ପିଲା

ନିଇତି ସଂଜରେ ନୟନ ମୁଦିକି
ଦିଅଁଙ୍କ ଜଣାଣ ଗାଇବ
ବାସି ଦରବରୁ ନଜର ହଟାଇ
ତଟକା ଜିନିଷ ଖାଇବ ।

ଚରଣ ଛୁଇଁବ ଗୁରୁଜନଙ୍କର
ମାନିବ ମାଆଙ୍କ କଥାକୁ
ସେନେହ କରିବ ଶୁକ, ଶାରୀ, ପାରା
ବଗିଚାର ଗଛଲତାକୁ ।

ଭାଇଭଉଣୀଙ୍କି ଆଦର କରିବ
ହାତ ଧରି ନବ ଯାତରା
ଆପଣା ଘରଟି ସୁତୁରା ରଖିବ
ପିନ୍ଧିବନି ଜମା କୋତରା ।



ମନକୁ ଲଗାଇ   ପାଠ ପଢୁଥିବ
ବହିକି ରଖିବ ସାଇତି
ଦରକାର ହେଲେ   କରିଦବ ଘରେ
ସାନ ସାନ କିଛି ପାଇଟି ।

ଧୀର କଥା କହି   ମନ ମୋହୁଥିବ
ବଚନ କହିବ ମଧୁର
କରିବନି କେବେ   ଚୁଗୁଲି ପଛରେ
ରାମ, ଶ୍ୟାମ ଅବା ଯଦୁର ।

ରୋଷ କରିବନି   ତୁଚ୍ଛାଟାରେ, ଦୁଃଖୀ
ପାଇଁକି ରଖିବ ମମତା
ଭଲପିଲା ବୋଲି   ଯାହାକୁ ଗଣିବା
ଏଇ ସବୁ ପରା କାମ ତା' ।



# ଖରା ଆସିଗଲା ଖରା

ଖରା ଆସିଗଲା ଖରା
ତତଲା ସୂରୁଯ କିରଣ ସାଥିରେ
ଡହଡହ ହେଲା ଧରା ।
ବଇଶାଖ ହେଲା ପାଖ
ଶୀତଳ ଟିକିଏ ପବନ ପାଇଁକି
ବିକଳ ମଣିଷ ଯାକ ।
ପଣାପାଣି ଲାଗି ଆଶ
ବିନା ବରଷାରେ ବନ ଝାଉଁଳଇ
ତରୁଲତା ଗଲେ ନାଶ ।

ଆମ୍ବ ଦିଶେ ପାଚି ନାଲି
ଝର ଶୁଖିଯାଏ, ତୁଆ ଶୁଖିଯାଏ
ନଈରେ ତତଲା ବାଲି ।
ସଂଜ ଆସେ ଯେବେ ନଇଁ
ତରାପରି ଫୁଟେ ମଲ୍ଲୀଫୁଲ, ବାଆ
ସୁବାସ ଆଣେ ତା ବହି ।
ଫୁଟି ପାଚେ, ପାଚେ ତାଳ
ପଣସ, ସପୁରି ପସରା ସଜାଇ
ଆସେ ଗିରୀଷମ କାଳ ।

✿✿✿

# ଟିକି ଚଢ଼େଇ



ଟିକି ଚଢ଼େଇରେ ଟିକି ଚଢ଼େଇ
ଆକାଶ ଆଡକୁ ଡେଣା ବଢ଼େଇ
କହ ମତେ କାହିଁ ଯାଉଛୁ ଉଡି
ଦେଖୁନୁ କି ବେଳ ଆସୁଛି ବୁଡି
ବଣୁଆ ଗଛର ନହକା ଡାଳ
ପବନ ଦୋହଲି ଦିଅଇ ତାଳ
ପେଣ୍ଠି ପେଣ୍ଠି ତହିଁ ପାଚଇ କୋଳି
ଯାଉଛୁ କି ତାହା ଖାଇବୁ ବୋଲି ?



ଟିକି ଚଢ଼େଇରେ ଟିକି ଚଢ଼େଇ
କଥା ଶୁଣୁନାଉଁ, ଏଡେ ବଡେଇ
ଡାକି ଡାକି ମୁଁ ଯେ ଗଲିଣି ଥକି
ତୋ ଲାଗି ଟୋପିରେ ଚାଉଳ ରଖି
ସକାଳ ପହରୁ ଚାହିଁଛି ବାଟ
ଫୁକୁରୁ ଫୁକୁରୁ କରିବୁ ନାଟ
ଅଗଣାରେ ଆମ ଆ' ରେ ଆ' ।

ହସି ଖେଳି ଘରେ ଲେଉଟି ଯା' ।
ଟିକି ଚଢ଼େଇରେ ଟିକି ଚଢ଼େଇ
ମାଠିଆରୁ ମିଠା ପାଣି ଗଡେଇ
ସାଇତି ରଖିଛି ତୋହରି ଲାଗି
ଥଣ୍ଟକୁ ବୁଡାଇ ପିଇବୁ ମାଗି
ଖୁଣ୍ଟିବୁ ଗହମ ଗୋଟିକି ଗୋଟି
ଆସିଯିବ ଯେବେ ଅନ୍ଧାର ଘୋଟି
ଫେରିଯିବୁ ତୋର ମାଆର ପାଶେ
ଦୂରବନେ ଯହିଁ ମହୁଲ ବାସେ ।





ଟିକି ଚଢ଼େଇରେ ଟିକି ଚଢ଼େଇ
ପାଚିଲା ପିଜୁଳି ଚୋପା ଛଡେଇ
ରଖିଛି ଖାଇବୁ ଭୋକିଲା ପକ୍ଷୀ
ଦିନସାରା ଉଡି ଯିବୁଣୁ ଥକି
ବସିଯାଆ ଟିକେ କୋଳରେ ମୋର
ଆଉଁଷି ଦେବି ତୋ ଚିକ୍କଣ ପର
ସଂଜ ନଇଁଗଲେ ଦେବି ଉଡେଇ
ଟିକି ଚଢ଼େଇରେ ଟିକି ଚଢ଼େଇ ।



# ଆସିଲା ଆଷାଢ଼ ଆସିଲା

ଆସିଲା ଆଷାଢ଼ ଆସିଲା
ଖରାତେଜ ପୂରା ନାଶିଲା
ସବୁଜପତର ଘାଗରା ପିନ୍ଧିକି
ଗଛ କିରି କିରି ହସିଲା ।

ଆସିଲା ଆଷାଢ଼ ଆସିଲା
ଆକାଶେ ବାଦଲ ଭାସିଲା
ପକ୍ଷିଆ ମଥାରେ ହଳଧରି ଚଷା
ଆପଣା ବିଲକୁ ଚଷିଲା ।



ଆସିଲା ଆଷାଢ଼ ଆସିଲା
ଝିରି ଝିରି ବୁନ୍ଦା ଖସିଲା
ବୁନ୍ଦା ବୁନ୍ଦା ସେଇ ପାଣି ପିଇଗଲା
ବସୁମତୀ ମାଆ ଶୋଷିଲା ।

ଆସିଲା ଆଷାଢ଼ ଆସିଲା
ନଈରେ ଅତଡା ଖସିଲା
ବନ୍ଧ ଭାଙ୍ଗିଦେଇ ବଢ଼ିପାଣି ଯେତେ
ଅଗଣା ଭିତରେ ପଶିଲା ।

ଆସିଲା ଆଷାଢ଼ ଆସିଲା
ସୂରୁଯ ଦେବତା ରୁଷିଲା
ମେଘ ଆଢୁଆଳେ ମୁହଁକୁ ଲୁଚାଇ
କଦବା କେମିତି ଦୁଶିଲା ।



ଆସିଲା ଆଷାଢ଼ ଆସିଲା
ଚାତକ ମନକୁ ତୋଷିଲା
ସାରୁଛତି ତଳେ ବେଙ୍ଗୁଲୀରାଣୀଟି
ମନ ମଉଜରେ ବସିଲା ।

ଆସିଲା ଆଷାଢ଼ ଆସିଲା
ଘଡ ଘଡି ବାଣ ପେଷିଲା
କଳ କଳ ନଈ କୂଳ ଉଛୁଳାଇ
ସାଗର ସାଥିରେ ମିଶିଲା ।



ଆସିଲା ଆଷାଢ଼ ଆସିଲା
କଦମ୍ବ ଫୁଲଟି ବାସିଲା
ଦଳ ଦଳ କଳା ମେଘମାଳା ଦେଖି
ମୟୂର ତହିଁରେ ରସିଲା ।

ଆସିଲା ଆଷାଢ଼ ଆସିଲା
କୁଆ ପଥର କେ ଚୁଷିଲା
ମେଘ ବରଷିଲା ଟୁପୁରୁ ଟୁପୁରୁ
ଗୀତ ଆମ କୁନି ଘୋଷିଲା ।



# କାଉ କଳା, କୋଇଲି କଳା

କାଉ କଳା,　　କୋଇଲି କଳା
କଳା ମଥାର କେଶ
ମାନୁ ଯାଉଛି　　କୁଣିଆ ଘର
ହେଇଛି ଦେଖ ବେଶ ।

ବଗୁଲୀ ଧଳା,　　ବତକ ଧଳା
ଧଳା ବି କ୍ଷୀର ସର
ମାନୁ ଯାଉଛି　　ଗାଡ଼ିରେ ଚଢ଼ି
ମଉଜେ ମାମୁ ଘର ।



ସିନ୍ଦୂର ନାଲି,　　କାଇଁଚ ନାଲି
ନାଲିଆ ଅଟେ ଫଗୁ
ମାନୁ ଯାଉଛି　　ମାମୁ ଘରକୁ
ସାଥିରେ ଭାଇ ଜଗୁ ।

ସବୁଜ ଘାସ,   ସବୁଜ ତୋଟା
ସବୁଜ ଦୂର ବନ
ମାନୁ ଯାଉଛି   ବୁଲିବା ପାଇଁ
ହରଷ ତା' ର ମନ ।



ଗୋଲାପ ଫୁଲ   ଗୋଲାପି ରଙ୍ଗ
ଗୋଲାପି ରଙ୍ଗ କଇଁ
ମାନୁ ଖାଇବ   ଆଇ ପାଖରେ
ସର, ଲବଣୀ ଦହି ।

ଅଶିଣମାସେ   ଆକାଶ ନେଳି
ନେଳି ଅପରାଜିତା
ମାନୁ ଖେଳିବ   ମାଉସୀ ସାଥେ
ନାଆଁଟି ଯା' ର ସୀତା ।

ପାଚିଲା ଫଳ,   ଆଉଟା ସୁନା
ହଳଦୀ ରଂଗ ଦୁହେଁ
ମାନୁ ଯାଉଛି   ମାମୁ ଘରକୁ
ଖେଳୁଛି ହସ ମୁହେଁ ।

✿✿✿



# ପ - ଫ - ବ - ଭ

ପଇଡ ପାଣିଟି ପେଟକୁ ଶୀତଳ, ଦେହକୁ ହିତ
ପଶମ ଲୁଗାରେ ଦୂର ହେଇଯାଏ ପଉଷ ଶୀତ ।
ପଞ୍ଜୁରୀ ଭିତରେ ତୋତାପକ୍ଷୀଟିଏ ବସିଛି ଦେଖ
ପଦୁଅଁ ଫୁଲକୁ ନେଇକି ଗୋଟିଏ କବିତା ଲେଖ ।



ଫଣା ଟେକି ଦେଇ ନାଗସାପଟିଏ କରୁଛି ଖେଳା
ଫଗୁ ବୋଳାହୁଏ ପୂରୁବ ଆକାଶେ ସକାଳବେଳା ।
ଫସଲ ପାଚିଲେ ଉଚ୍ଛାଟ ହୁଅଇ ଚାଷୀର ମନ
ଫରଚା ଦିଶଇ ଅନ୍ଧାର, ଉଇଁଲେ ପୂନେଇଁ ଜହ୍ନ ।



ବଢ଼ିଆ ଲାଗଇ ଘିଅ ମହମହ ଖେଚେଡି ଭାତ
ବଗିଚା ଗଛରୁ ବରକୋଳି ତୋଳ ବଢ଼ାଇ ହାତ ।
ବଟୁଆ ଭିତରେ ପାନସଜ ଯାକ ରଖନ୍ତି ଅଜା
ବରଫ ମିଶାଇ ସରବତ ପିଅ ଜାଣିବ ମଜା ।

ଭଲି ଭଲି ଫୁଲ ଫୁଟିଯାଏ ହେଲେ ଫଗୁଣ ମାସ
ଭରତି କରିକି କଳସୀରେ ପାଣି ରଖିବା ଆସ
ଭଜନ ଗାଉଛି ଦେଉଳବେଢ଼ାରେ ହେଇଟି ଅନା
ଭଉଣୀ ମୋହର, ଭଲି ଭଲି ଗୀତ ତାହାକୁ ଜଣା ।



# ବାପା ଡାକି କାଲି କହିଲେ

ବାପା ଡାକି କାଲି କହିଲେ
ସୁଖ ଓ ଦୁଃଖରେ ଦୋହଲି ନଯାଇ
ଥିର ମନା ହେଇ ରହିଲେ
ଅସଲ ମଣିଷ ହୋଇବୁ,
ହସ ଓ କାନ୍ଦର ଭାର ଯଦି ଧନ
ସମାନ ଭାବରେ ବୋହିବୁ ।



ବୋଉ ଡାକି କାଲି କହିଲା
ସୁନାପୁଅ ବୋଲି ଗଣାହେବୁ ଯଦି
ମନେ ତୋ ଏକଥା ରହିଲା
ପିଠା ହେଉ ଅବା ପାୟସ,
ସଭିଙ୍କ ସାଥିରେ ବାଣ୍ଟିକି ଖାଇବୁ
ନକରିକି ନିଜେ ଅୟସ ।

ଜେଜେ ଡାକି କାଲି କହିଲେ
ମଉଜ ପାଇଁକି ବଗିଚାରେ ବୁଲି
ପ୍ରଜାପତି କେବେ ଧଇଲେ
ଛାଡିଦେବୁ ତାକୁ ବେଇଗି
କିସ ଲାଭ କହ ପଶୁ ଓ ପକ୍ଷୀଙ୍କୁ
ଅଯଥା କଷଣ ଦେଇକି ?

ଆଈ ଡାକି କାଲି କହିଲା
ଆରତ ଜନଙ୍କ ସେବାରେ ଯାହାର
ସାରାଟା ଜୀବନ ସଇଲା
ଅମର ସେ ସବୁ କାଳରେ
ଦୀନଜନେ ଦୟା ଦେଖାଇବା ଲାଗି
ଭୁଲିବୁନି ଗଳାମାଳରେ ।



# ଟୁଙ୍କ୍‌ଲା, ଟୁଙ୍କ୍‌ଲୀ, ଟୁନ୍‌ଟୁନିଆ

ଟୁଙ୍କ୍‌ଲା, ଟୁଙ୍କୁଲୀ, ଟୁନ୍‌ଟୁନିଆ
ଯାଇଥିଲେ ଦିନେ ବଜାର
ପଉଷ ସକାଳ, କଅଁଳ ଖରା
ପାଗଥିଲା ଭାରି ମଜାର ।
ତିନିଙ୍କ ପାଇଁକି ନଅଟି ଟଙ୍କା
ମାଆ ଦେଇଥିଲେ ବାଣ୍ଟିକି
ହାଟରେ କିଣିକି ମିଠେଇ, ଖଜା
ପକେଇବେ ବୋଲି ପାଟିକି ।
ଗମ୍‌ଗମ୍ ଲୋକ ଗହଳି ମେଳେ
ଟଙ୍କେ ଲେଖେଁ ଦେଇ ହାଟରେ
ଟୁଙ୍କ୍‌ଲା, ଟୁଙ୍କୁଲୀ, ଟୁନ୍‌ଟୁନିଆ
ଦେଖିଲେ କଣ୍ଢେଇନାଟରେ ।



ବଳିଥିଲା ଆଉ ଛଅଟି ଟଙ୍କା
ଟୁଙ୍କ୍‌ଲା କିଣିଲା ମୁଢ଼ୁକି
ଠୁଙ୍ଗାରେ ଧରିକି ମଉଜ କରି
ଚୋବାଇଲା କୁଡ଼ୁମୁଡ଼ୁକି ।
ଟୁଙ୍କ୍‌ଲୀ କିଣିଲା ଦି' ଟଙ୍କା ଦେଇ
ଖାସ୍‌ତା ନିମିକି ଯୋଡ଼ିଏ
ଭାଙ୍ଗି ଭାଙ୍ଗି ତାକୁ ଖାଇଲା ବସି
ଲଗାଇକି ବେଳ ଘଡ଼ିଏ ।
ଭାଳେ ବସି ହାଟେ ଟୁନ୍‌ଟୁନିଆ
କିସ ନବ ଦୁଇଟଙ୍କାରେ
ଶେଷକୁ କିଣିଲା ମାଆଙ୍କ ପାଇଁ
ଦୁଇପଟ ନାଲି ଶଙ୍ଖାରେ ।



# ଚତୁର କାଉ

ଗିରୀଷମ ଋତୁ ଗରମ ଦିନ
କାହିଁ ନାହିଁ ଠୋପେ ପାଣିର ଚିହ୍ନ ।
ଡାମରା କାଉକୁ ଲାଗିଲା ଶୋଷ
ଆସିଲା ବୁଲି ସେ ଚଉଦ କୋଶ ।
ଦରଦର ଦେହୁ ବୁହାଇ ଝାଳ
ସବୁଠି ଶୁଖିଲା ପୋଖରୀ, ନାଳ ।
ଶେଷକୁ ଗୋଟିଏ ପାଣି ମାଠିଆ
ଦେଖିଲା ଜଣକ ପିଣ୍ଡାରେ ଠିଆ
ଗାଆଁମୁଣ୍ଡଘର ବାରିଆଡିକି
ପାଣି ପିଇବାକୁ ଡେଣା ଝାଡିକି
ବସିଲା ଯାଇ ସେ କଳସୀଫନ୍ଦେ
ପାଣିଥିଲା ତଳେ ଜମାରୁ ମନ୍ଦେ ।



ପାଇଲାନି ତାର ପାଣିକୁ ଥଣ୍ଟ
ଶୋଷେ ଥିଲା ଯେଣୁ ସେ ଛଟପଟ
ପାଣି ପିଇବାକୁ ଉପାୟ ଖଞ୍ଜି
କୁନି କୁନି ଗୋଡି ପଥର ଖୋଜି
କଳସୀ ଭିତରେ ଗୋଟି ଗୋଟିକା
ପକାଇ ଲାଗିଲା ଖଟି ଖଟିକା ।



ଶୁଣ ଶୁଣ ପିଲେ ମଜାର କଥା
ଅପସରି ଗଲା କାଉର ବଥା
ଗୋଡି ଜମାହେଲା କଳସୀ ତଳେ
ଉପରକୁ ପାଣି ଉଠିଲା ବଳେ
ଡାମରା ମଜାରେ ପିଇଲା ପାଣି
ଚତୁର କାଉର ଇଏ କାହାଣୀ ।

✿✿✿

# ଯେସାକୁ ତେସା



ବିଲୁଆ ଡାକିଲା ବଗୁଲୀ ନାନୀକୁ ଥରଟେ
ମିତ ବସିବାକୁ, ବଗୁଲୀ ଯାଏନି ପରତେ
ବିଲୁଆ କହଇ ଭାରି ଏକୁଟିଆ ନାନୀ ମୁଁ
ମିଶିଲେ ସାଥିରେ କେଡେ ଭଲ ମୁହିଁ ଜାଣିବୁ ।



କେଇଦିନ ପରେ ବଗୁଲୀକୁ କହେ ବିଲୁଆ
ଭୋଜି ଖାଇବାକୁ ଘରକୁ ମୋହର କାଲି ଆ
ବଗୁଲୀନାନୀଟି ଖୁସି ହେଇଗଲା ମନରେ
ଭୋଜି ଭାତ ଅବା ମିଳୁଛି କାହିଁ ବା ବନରେ ?



ପହଞ୍ଚିଲା ଯାଇ ବିଲୁଆ ନନାର ଘରଠି
ଥାଳିରେ ଢ଼ାଳିକି କ୍ଷୀରୀ ଆଉ କ୍ଷୀର ସରଟି
ବିଲୁଆ ରଖିଲା ବଗୁଲୀ ନାନୀର ଆଗରେ
ଚାଟି ଚାଟି ନିଜେ ଖାଇଗଲା କେଡେ ବାଗରେ ।

ଥଣ୍ଡରେ ବଗୁଲୀ ଖାଇପାରିଲାନି କ୍ଷୀରିସା
ଜାଣିଲା ବୁଦ୍ଧିରେ ନୁହେଁ ସେ ବିଲୁଆ ସରିସା
ଉପାସ ପେଟରେ ଲେଉଟି ଆସିଲା ଘରକୁ
ରାଗରେ ଫୁଲାଇ ଧୋବଧାଉଳିଆ ପରକୁ ।



ଭାଳି ଭାଳି ଶେଷେ ଉପାୟ ଖୋଜିକି ପାଇଲା
ବିଲୁଆ ଭାଇକି ଜଳପାନ ପାଇଁ କହିଲା
କ୍ଷୀରୀ ବାଢ଼ି ଦେଲା କଳସୀ ଭରତି କରିକି
ଥଣ୍ଡ ବୁଡାଇକି ପିଇଗଲା ପେଟ ଭରିକି ।





ଖାଇପାରିଲାନି ବିଲୁଆ ବଣାରୁ ପାୟସ
କହିଲା ବଗୁଲୀ ଭାରି ତୋ ହେଲାଣି ସାହସ
ବଗୁଲୀ କହଇ ତୋ ଲାଗି ନାହିଁ ମୋ କରୁଣା
ଯେସାକୁ ତେସା ଯେ କଥାଅଛି ଆମ ପୁରୁଣା ।



# ଭାଷା କାରସାଦି



ତାରରେ ବସିଛି ଏକେଲା କଜଳପାତି
ତାର ଆସିଅଛି ନାନୀର ହୋଇଛି ନାତି ।
ରାତି ଦି' ଘଡିକୁ ଫେରିଥିଲେ କାଲି ଭାଇ
ଲଟେରୀରୁ ନୂଆ ହାତଘଡିଟିଏ ପାଇ ।

କଥା କଥାକରେ ଯାଅ ନାଇଁ ଜମ୍ମା ରୁଷି
ଋଷି ମୁନିଙ୍କର ଗାଥା ପଢ଼ ହେଇ ଖୁସି ।
ଦଳ ଦଳ ଲୋକ ଯାଉଛନ୍ତି ଦେଖି ମେଳା
ପୋଖରୀ ଦଳରେ କଇଁଫୁଲ କରେ ଖେଳା ।



ପାହାଡୀ ଝିଅଟି ବେଣୀରେ ଖୋଷିଛି ପର
ପର ଓ ଆପଣା ଭେଦଭାବ ଦୂର କର ।
କଉଶଲ୍ୟା ଥିଲେ ଅଯୋଧ୍ୟାର ପାଟରାଣୀ
ପାଟଶାଢ଼ୀ ମତେ ବାପା ଦେଇଛନ୍ତି ଆଣି ।
ଗୁଣ୍ଡି ଖାଉଥିଲେ ଦାନ୍ତମୂଳ ଯାଏ ସଢ଼ି
ଗୁଣ୍ଡି ହେଇଗଲା କାଚଗିନା ତଳେ ପଡି ।
ମିଠାପାନ ପିକ ଓଠ କରିଥାଏ ନାଲି
ଆମ୍ବ ଡାଳେ ପିକ ଗୀତ ଗାଉଥିଲା କାଲି ।

ଦୁଇଗଛ କନା ହାଟରୁ କିଣିଲା ରାମ
ଗଜରାଜ ପରା ଅଇରାବତର ନାମ ।
ଶାଳପତା ତକ ପଦାରେ ହେଇଛି ଥୁଆ
କମାରଶାଳରୁ ପଜେଇକି ଆଣ ଲୁହା ।
କଳା ବଉଦରେ ଶୋଭଇ ବିଜୁଳିଗାର
କି ସୁନ୍ଦର ଛବି ଆଙ୍କିଯାଏ କଳାକାର ।

ପେଛି ପେଛି ଫଳ ଫଳିଛି ଗଛର ଡାଳେ
ଭଲକାମ କଲେ ଫଳ ମିଳେ ସବୁ କାଳେ ।
ହାତୀ ଚାଲୁଥାଏ ବଡ ବଡ ଖୋଜ ତାର
ଖୋଜ କାହିଁଗଲା କୁନିଝିଅ ସୁନାହାର ।
ଚକା ପକେଇକି ଚଟାଣ ଉପରେ ବସି
ଚକାଡୋଳାଙ୍କର ଭଜନ ଗାଉଛି ଶଶୀ ।
ଗୋଟିଏ ଶବଦ, ବୁଝାଏ ଦୁଇଟି କଥା
ଭାଷା କାରସାଦି ଦେଖି ଘୂରିଯାଏ ମଥା ।



# ବୋକା ନବଘନ



ଆମରି ଗାଆଁର ବୋକା ନବଘନ
ବରା କରୁଥିଲା ବିକିରି
କପାଳଗୁଣରୁ ମିଳିଗଲା ତାକୁ
ପୁଲିସିରେ ଏକ ଚାକିରି ।



ଭାବିଲା ମନରେ ବୁଦ୍ଧିମନ୍ତ ମୁହିଁ
ଦେଖ ଯେ ହେଇଛି ପୁଲିସି
ବୋକା ବୋଲି କହି ବାପାଙ୍କ ଆଗରେ
ଆଉ କେ କରିବ ନାଲିସି ?



ଦିନ ବିତି ଯାଏ ଥରଟେ ରାତିରେ
ନବ ଧରେ ଏକ ଚୋରକୁ
ଥାନା ଯାଉଯାଉ ଚୋର କହେ ଭାଇ
ଯିବି ମୁଁ ଟିକିଏ ଘରକୁ ।

ଶୀତଋତୁ ଏବେ ଚାଦରଖଣ୍ଡିଏ
ନ ଆଣିଲେ ଘରୁ ମରିବି
ଅଳପକ ପାଇଁ ଛାଡିଦିଅ, ଯାହା
କହିବ ପଛକେ କରିବି ।

ନବଘନ କହେ ସେ କଥାହବନି
ଛାଡିଦେଲେ ଯିବୁ ପଳେଇ
ଏଇଠି ଏକେଲା ଠିଆ ହେଇଥାଅ
ଟରଚ ବତୀ ମୋ ଜଳେଇ ।





ଘର ବତେଇଦେ, ନିଜେ ଯିବି ମୁହିଁ
ଲେଉଟିବି ଗୋଟେ କ୍ଷଣରେ
ଛାଡିଦେଲେ ତତେ ଫେରିବୁ ତୁ ସତେ
ପରତେ ହୁଏନି ମନରେ ।

ଚୋର କହିଥାଏ, ଠିକ୍, ଠିକ୍, ନବ
ଯାଅଇ ଚାଦର ପାଇଁକି
ଆସିଲାବେଳକୁ ଚୋରଟି ଗାୟବ୍
ନବ ବୁଝେନାହିଁ କାହିଁକି ।



# ମଦରଙ୍ଗା ଶାଗ ରାଇତା



ମଦରଙ୍ଗା ଶାଗ ରାଇତା
କୁନା ରଖିଥାଏ ଖବର କାଗଜ
ମଲାଟ ଦେଇକି ବହି ତା
ମୁନା ଫିଙ୍ଗୁଥାଏ ଏଣେ ତେଣେ ତାର
ବହି, ଖାତା ଆଉ ସିଲଟ
ଖେଳ ଖେଳିବାରୁ ତର ନାହିଁ ତାକୁ
ବହିରେ କେ ଦେବ ମଲାଟ ?
କୁନା ରଖିଥାଏ ବହିଖାତା ତକ
ବସ୍ତାନିଟିରେ ସାଇତି
ମୁନା କହେ ମୋର କିଏ ସେ କରିବ
ଦିନରାତି ଏତେ ପାଇଟି ।



କୁନା ବହିତକ ନୂଆ ଚକଚକ
ସତେ ଅବା କିଣା ଏଇଲେ
ମୁନା ନିଏ ନାହିଁ ବହିର ଯତନ
ଶୁଣେ ନାଇଁ କଥା କହିଲେ

ପରୀକ୍ଷା ଆସିଲା, କୁନା ପଢ଼େ ଯେବେ
ଇତିହାସ ଆଉ ଗଣିତ
ବହି ହଜେଇକି ମୁନା କାନ୍ଦୁଥାଏ
ଆଖିରୁ ଝରାଇ ପାଣିତ ।



# ଉଦୁକୁଦୁମା



ଉଦୁକୁଦୁମା, ତାଳ ଗୋଟମା
ତାଳ ପାଉରାଣୀ, ପିତଳ ସମା
ବୁଢ଼ୀଟିଏ ଥିଲା ସାହିରେ
ତାଳଗଛ ତଳେ ହେଇକି ଠିଆ
ଫଳଟିଏ ମତେ ଦେଲୁନି କିଆଁ
କହିଲା ଦିନଟେ ଯାଇରେ ।
କହିଲା ରସକୁ ଅଟାରେ ଗୋଳି
ପିଠା କରିଥାନ୍ତି ଭଲିକି ଭଲି
ଜୀବନରେ ତାହା ନୋହିଲା
କେତେ କିଏ ନେଲେ ପାଚିଲା ତାଳ
ମୋହରି ବେଳକୁ ହେଲୁ ତୁ କାଳ
ଫଳ ଯେ ଆସିକି ସଇଲା ।



ଏତିକି ବେଳକୁ କାନ୍ଦିରୁ ଖସି
ଡେମ୍ଫ ସହ ଏକ ତାଳର କଷି
ପଡିଲା ବୁଢ଼ୀର ହାତରେ
ବୁଢ଼ୀକି ମିଳିଲା ଶକତ ମାଡ
ଜଖମ ହୋଇଲା ପାପୁଲି ହାଡ
ଭଲ ହେଲା ମାସ ସାତରେ ।

✿✿✿

# ବାଜା

ଜଳତରଂଗ ସେ ପାଣିରୁ ସରଜେ ସ୍ୱର
ସାହନାଇ ବାଜେ ହେଉଥିଲେ ବାହାଘର ।
ଭଜନ ସାଥିରେ ବୁଢ଼ୀମା ବଜାନ୍ତି ଗିନି
ଖଞ୍ଜଣୀ ବାଜୁଛି ଶୁଣିବୁ ଆ' ଲୋ ମିନି ।

ବିଦେଶୀ ଗୀତକୁ ପିଆନୋ ହୁଅଇ ଲୋଡା
କଥକ ନାଚକୁ ଡୁଗିତବ୍‌ଲାର ଯୋଡା ।
ଝାଞ୍ଜହାତେ ନେଇ ପାଲାକାର ଗାଏ ଗୀତ
ଦେଉଳରେ ବାଜେ ଖୋଳ, କରତାଳ ବି ତ ।



ନାଥ ଯୋଗୀ ହାତେ କେନ୍ଦେରା କୁଉଁକୁ ବାଜେ
ମୁରୁଦଙ୍ଗ ତାଳେ ଗୋଟିପୁଅ ଘୂରି ନାଚେ ।
ତାନ୍‌ପୁରା ଧରି ଓଡିଶୀ ଗାଉଛି କିଏ
ସେତାର୍ ବାଜଣା, ଭାରି ସୁରମୟ ସିଏ ।



ସାରେଙ୍ଗୀ, ସନ୍ତୁର, ବଡ କଠିନ ସେ ବାଜା
ଗୀଟାର୍ ବଜାଏ ସାନଭାଇ ମୋର ରାଜା ।
ମହୁରୀ ବଜାଇ ଖେଳାଉଛି କେଳା ନାଗ
ବେହେଲାରେ ଶୁଣ ବାଜୁଛି ପାହାଡୀ ରାଗ ।
ଏକ୍‌ତାରା ହାତେ ଲୋକଟି ମାଗୁଛି ଭିକ
ଗୀତ ପାଇଁ ଆଗ ହାର୍‌ମୋନିୟମ୍ ଶିଖ ।
କଦମ୍ବର ଛାଇ, ନୀଳଯମୁନାର କୂଳ
ବାଜୁଥିଲା ତହିଁ ମୋହନ ମୂରଲୀ ସୁର ।

✿✿✿



# କଥା



ଭଲକଥା ସଦାବେଳେ କହିବ
ତେବେ ସିନା ଜନମନ ମୋହିବ,
ସତକଥା କହୁଥିଲେ ବାପୁଜୀ
ମିଛକଥା କହିବିନି ଭାବୁଛି ।
ଟାଣ କଥା ବାଧିଥାଏ ସଭିଙ୍କି
ଶୁଦ୍ଧକଥା ଶୋଭାପାଏ କବିକି
ନ୍ୟାୟ କଥା କହେ ଘର ମୁରବୀ
ଫୁଟାଣିଆ କଥା କହେ ଗରବୀ



ରୂପକଥା ଆଈ କହେ ରାତିରେ
ଉଡାକଥା କାନ ଦେନା ସେଥିରେ ।
ଧୀରକଥା ଭଲ ଲାଗେ କାନକୁ
ନୀତି କଥା ଶିଖାଇବ ସାନଙ୍କୁ
ଚୁଗୁଲିଆ କଥା କହେ ଚିକ୍କଣ
କଡା କଥା କହେ ଭାଇ ଲଖଣ ।
ଗୁମର କଥାଟି କିଏ କହିଲେ
ମନ ଦବିଯାଇ ଥାଏ ପହିଲେ
ପ୍ରିୟ କଥା କହ ନେଇ ଶପଥ
ଶୁଣ ନାହିଁ କାହା କଥା ଗୁପତ
ମନେରଖ ମିଠା କଥା ଯାଦୁରେ
ବଶୀଭୂତ ରାଜା, ରଙ୍କ, ସାଧୁରେ ।

✿✿✿




କିଏ ଦେଇଥାଏ କେତକୀ, କାମିନୀ, କଦମ୍ବ, ନିଆଳି, ଚମ୍ପା
ଧୋବଲୁଗା ପାଇଁ ସାଇତି ରଖେ କେ ଶୁଖିଲା ଫଳରେ କପା
କିଏ ଦେଇଥାଏ ସପୁରି, ପଣସ ଅଥବା ଖଜୁରୀ, ସେଉ
ବାତାପି, ବେଦାନା, ସପେଟା ଦିଏ କେ ରସ ନିଗିଡାଇ ଦେହୁ
ଗଛ ଦେଇଥାଏ ଗଛ
ଗଛ ମୂଳେ ପାଣି ମନ୍ଦିଏ ଢ଼ାଳିବ ସବୁ କାମ କରି ପଛ ।



କିଏ ଦେଇଥାଏ ପପେୟା, ପାଳଙ୍ଗ, ଜହ୍ନି, ବାଇଗଣ, ଖଡା
ବରଷାଋତୁରେ ଘର ଛାଆଣିକୁ ଚଷାପୁଅ ପାଇଁ ନଡା
କିଏ ଦେଇଥାଏ ମସୁର, ମାଣ୍ଡିଆ, ବାଜରା, ଗହମ, ଧାନ
ବଞ୍ଚିବା ପାଇଁକି ପବନେ ଭରେ କେ ନିରୋଳା ଅମଳଜାନ
ଗଛ ଦେଇଥାଏ ଗଛ
ଗଛ ଲଗାଇକି ଧରଣୀ ଭୂଇଁରେ ସରଗପୁରୀକୁ ରଚ ।

କିଏ ଦେଇଥାଏ ପଲଙ୍କ, ପାଲିଙ୍କି, ଚଉକୀ ପାଇଁକି କାଠ
ଧୋବ ଫରଫର କାଗଜ ଫରଦ ପଢ଼ିବା ପାଇଁ କି ପାଠ
କିଏ ଦେଇଥାଏ ହରିଡା, ବାହାଡା, ଜାଇଫଳ, ଡାଳଚିନି
ଚୂଡା, ମୁଢ଼ି, ଖଇ, ହୁଡୁମ୍ବ, ଉଖୁଡା, ନବାତ, ମିଶିରି, ଚିନି
ଗଛ ଦେଇଥାଏ ଗଛ
ଗଛ ଲଗାଇକି ବସୁଧା ବଞ୍ଚାଅ ନିଜେ ବି ଭଲ କି ବଞ୍ଚ ।



କିଏ ଦେଇଥାଏ ଅଉଷଧି ରୂପେ ତୁଳସୀ, ହଳଦୀ, ବେଲ
ଜଳପାଇ, ରାଶି, ବାଦାମ, ସୋରିଷ ଅଥବା ନଡିଆତେଲ
କିଏ ଦେଇଥାଏ ବେହେଲା, ବଇଁଶୀ ଗାଇବା ପାଇଁକି ଗୀତ
ଶିମିଳି ତୁଳାର ନରମ ରେଜେଇ, ଆସିଲେ ପଉଷ ଶୀତ
ଗଛ ଦେଇଥାଏ ଗଛ
ଗଛ ସାଜିଦିଏ ଧୂସର ମାଟିରେ ସବୁଜ, ସୁନ୍ଦର ମଞ୍ଚ ।



ସାଂପ୍ରତିକ ଶିଶୁସାହିତ୍ୟରେ କାନନ ମିଶ୍ର ଏକ ଜଣାଶୁଣା ନାଁ । ଶିକ୍ଷଣୀୟ ବିଷୟବସ୍ତୁକୁ ନେଇ ପିଲାମାନଙ୍କ ମନଲାଖି କବିତା ଲେଖନ୍ତି ନିଷ୍ଠାର ସହିତ । ତାଙ୍କ ସୃଜନଶୀଳତାର ପରିଚୟ ମିଳେ ତାଙ୍କର ଛନ୍ଦ ଓ ଉପଧାମିଳନର ଦକ୍ଷତାରେ । ଶିଶୁକବିତା ବ୍ୟତୀତ ତାଙ୍କ ଦ୍ୱାରା ଲିଖିତ ଗଳ୍ପ, କବିତା, ଫିଚର ଓ ସ୍ମୃତିଲେଖାରେ ଓଡିଆ ସାହିତ୍ୟ ଋଦ୍ଧିମନ୍ତ । ଲେଖନ୍ତି ଉଭୟ ଓଡିଆ ଓ ଇଂରାଜୀରେ ।

ଜନ୍ମସ୍ଥାନ : କଟକ

ପିତା : ୰ ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀ

ମାତା : ୰ ଶ୍ରୀମତୀ ସୁରେଖା ତ୍ରିପାଠୀ

ଶିକ୍ଷା : ଏମ୍.ଏ.(ଇଂରାଜୀ), ଏମ୍.ଏ.(ଓଡିଆ),
ଏମ୍.ଲିଟ୍.(ତୁଳନାତ୍ମକ ସାହିତ୍ୟ)

ପୁରସ୍କାର : ଆଗାମୀ ଶତାବ୍ଦୀ, ପ୍ରଜାତନ୍ତ୍ର ପ୍ରଚାର ସମିତି,
ଫକୀରମୋହନ ସାହିତ୍ୟ ପରିଷଦ,
ସୁଧନ୍ୟା ତଥା ପ୍ରତିଭାସିକ୍ତ ଦ୍ୱାରା ସମ୍ମାନିତ ଓ ପୁରସ୍କୃତ ।

ରଚନାବଳୀ : ଓଡିଆ -

୧. ବହିମେଳାରୁ ବୟଫ୍ରେଣ୍ଡ ପର୍ଯ୍ୟନ୍ତ (ଗଳ୍ପ ସଂକଳନ)
୨. ଅଧାଲେଖା ଦସ୍ତାବିଜ୍ (ଗଳ୍ପ ସଂକଳନ)
୩. ଗପସପ (ଫିଚର ସଂକଳନ)
୪. ତୀର୍ଥ (କବିତା ସଂକଳନ)
୫. କାଗଜ ଡଙ୍ଗା (ଶିଶୁକବିତା ସଂକଳନ)
୬. ଟୁପୁରୁ ଟୁପୁରୁ ବରଷେ ପାଣି (ଶିଶୁକବିତା ସଂକଳନ)
୭. ହୀରା, ମୋତି, ମାଣିକ (ଶିଶୁକବିତା ସଂକଳନ)
୮. ନବସାକ୍ଷରଙ୍କ ପାଇଁ କବିତା
୯. ଓଡିଆ ପଦ୍ୟମହାକାବ୍ୟର କ୍ରମବିକାଶ (ସମାଲୋଚନା ଗ୍ରନ୍ଥ)
୧୦. ମିଶ୍ର ସ୍ୱାଦ (ଗଳ୍ପ ସଂକଳନ)

ଇଂରାଜୀ -

1 A Tryst with Life - A Collection of Memoirs



ସାଂପ୍ରତିକ ଶିଶୁସାହିତ୍ୟ କ୍ଷେତ୍ରରେ କାନନ ମିଶ୍ର ଏକ ଜଣାଶୁଣା ନାଁ । ଶିକ୍ଷଣୀୟ ବିଷୟବସ୍ତୁକୁ ନେଇ ପିଲାମାନଙ୍କ ମନଛୁଆଁ କବିତା ଲେଖନ୍ତି ନିଷ୍ଠାର ସହିତ । ତାଙ୍କ ସୃଜନଶୀଳତାର ପରିଚୟ ମିଳେ ତାଙ୍କର ଛନ୍ଦ ଓ ଉପଧାମିଳନର ଦକ୍ଷତାରେ । ଶିଶୁକବିତା ବ୍ୟତୀତ ତାଙ୍କ ଦ୍ୱାରା ଲିଖିତ ଗଳ୍ପ, କବିତା, ଫିଚର ଓ ସ୍ମୃତିଲେଖାରେ ଓଡ଼ିଆ ସାହିତ୍ୟ ଋଦ୍ଧିମନ୍ତ । ଲେଖନ୍ତି ଉଭୟ ଓଡ଼ିଆ ଓ ଇଂରାଜୀରେ ।

ଜନ୍ମସ୍ଥାନ : କଟକ

ପିତା : ✓ ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀ

ମାତା : ✓ ଶ୍ରୀମତୀ ସୁରେଖା ତ୍ରିପାଠୀ

ଶିକ୍ଷା : ଏମ୍.ଏ.(ଇଂରାଜୀ), ଏମ୍.ଏ.(ଓଡ଼ିଆ),
ଏମ୍.ଲିଟ୍.(ତୁଳନାତ୍ମକ ସାହିତ୍ୟ)

ପୁରସ୍କାର : ଆଗାମୀ ଶତାବ୍ଦୀ, ପ୍ରଜାତନ୍ତ୍ର ପ୍ରଚାର ସମିତି,
ଫକୀରମୋହନ ସାହିତ୍ୟ ପରିଷଦ,
ସୁଧନ୍ୟା ତଥା ପ୍ରତିଭାସିକ୍ତ ଦ୍ୱାରା ସମ୍ମାନିତ ଓ ପୁରସ୍କୃତ ।

ରଚନାବଳୀ :

<u>ଓଡ଼ିଆ</u>

୧. ବହିମେଳାରୁ ବୟଫ୍ରେଣ୍ଡ ପର୍ଯ୍ୟନ୍ତ (ଗଳ୍ପ ସଂକଳନ)
୨. ଅଧାଲେଖା ଦସ୍ତାବିଜ୍ (ଗଳ୍ପ ସଂକଳନ)
୩. ଗପସପ (ଫିଚର ସଂକଳନ)
୪. ତୀର୍ଥ (କବିତା ସଂକଳନ)
୫. କାଗଜ ଡଙ୍ଗା (ଶିଶୁକବିତା ସଂକଳନ)
୬. ଟୁପୁରୁ ଟୁପୁରୁ ବରଷେ ପାଣି (ଶିଶୁକବିତା ସଂକଳନ)
୭. ହୀରା, ମୋତି, ମାଣିକ (ଶିଶୁକବିତା ସଂକଳନ)
୮. ନବସାକ୍ଷରଙ୍କ ପାଇଁ କବିତା
୯. ଓଡ଼ିଆ ପଦ୍ୟମହାକାବ୍ୟର କ୍ରମବିକାଶ (ସମାଲୋଚନା ଗ୍ରନ୍ଥ)
୧୦. ମିଶ୍ର ସ୍ୱାଦ (ଗଳ୍ପ ସଂକଳନ)

<u>ଇଂରାଜୀ</u>

1. A Tryst with Life - A Collection of Memoirs



ISBN-81-87348-30-3